# ଅଶ୍ରୁଧାରା ।



ଶ୍ରୀ ଚିନ୍ତାମଣି ହରିଚନ୍ଦନ ଜଗଦେବ ।

# ଅଶ୍ରୁଧାର୍ ।

ସୁରଙ୍ଗୀ ଅଧୀଶ୍ୱର

ଶ୍ରୀ ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦ୍ଦେବ

ବିରଚିତ ।

ପ୍ରଥମ ମୁଦ୍ରଣ ।

**Printed by V. Kar.**

THE UTKAL SAHITYA PRESS,

CUTTACK.

1917.

# ଅଶ୍ରୁଧାରା ।

ଗଲ କି ଆଗରୁ ସଖା, ଅମରଭୁବନ,
ଗଢ଼ିବ ମୋପାଇଁ ନହିଁ ସ୍ୱତନ୍ତ୍ର ଆସନ ।

ମୋହୋ ସମ ହତଭାଗ୍ୟ ସକାଶେ ସେ ସ୍ଥଳେ
ସ୍ଥାନ ନାହିଁ ବୋଲି ଜାଣି ଗଲ କି ଚପଳେ ।

କିପାଁ ଶୁଭ୍ର-ପ୍ରେମ-ନୀର ହୃଦୟ-କାସାରେ
ପୂର୍ଣ୍ଣ କରି ଶୁଖାଇ ତା ଦେଲ ଏକବାରେ ।

ଏ ଗୂଢ଼ ସମସ୍ୟା ତବ ତୁମ୍ଭଙ୍କୁ ଗୋଚର,
ବୁଝିବ କି ଅଭାଜନ ଏ ଛାର ପାମର ।

ପ୍ରେମ-ଧନ ଦେଇ ନେଲ କି ବନ୍ଧୁର ଚିତ୍ତେ,
ଗଲାବେଳେ ସେ କାରଣ ନ କହୁ କିଂଶୁଡେନ

ମନେ ଯଦି ଥିଲା ଛଡ଼ି ଯିବାକୁ ଏପରି,
ଦୁଇ ଦିନ ପାଇଁ କିପାଁ ଭଙ୍ଗୁର ମିଳନ ।

ଏକାକୀ ରହିଲେ, ଦେବି, ତବ ପ୍ରେମ-ଋଣ
ପରିଶୋଧ କରିବାରେ ନ ହେବି ନିପୁଣ ।

ନୈରାଶ୍ୟର ହାହାମୟ ତପ୍ତ ଅଶ୍ରୁଧାର
ଢାଳୁଥିବ ସିନା ଆହା ଜୀବନଟା ସାର ।

ଋଣୀ କରି ରଖିବାକୁ ମନ ଯଦି ସୁଖ,
ରହି ଏକାକିନୀ, ସହେ ହେଉ ମୋର ଦୁଃଖ ।

ସତ୍ୟ କରି କହୁଅଛୁ ନୁହ ତୁମ୍ଭେ ଋଣୀ,
ମୁହିଁ ଏକା ଋଣବଦ୍ଧ ଗୁଣବଦ୍ଧ ପୁଣି ।

ଦେଇଅଛି କେତେ ମୁହିଁ ତୁମ୍ଭ ମନେ କ୍ଲେଶ,
ତୁମ୍ଭ ବିନା କେହି ନାହିଁ ସହିବାକୁ ଲେଶ ।

କହୁଅଛ, ସତି, ଯେଉଁ ଭବିଷ୍ୟତ ବାଣୀ,
[illegible] ଭାବି ତାହା ମନ ହେଉଅଛି ହାଣି ।

ଭବାର୍ଣ୍ଣବେ ତବ ପୁଣ୍ୟ ପ୍ରଭାବୁଁ ନ ବୁଡ଼ି,
ଥିଲି ଆଶା ଆସିବାକୁ କୂଳକୁ ବାହୁଡ଼ି ।

ସେ ଆଶା ସମୂଳେ ଏବେ ହେଲା ତିରୋହିତ,
ସନ୍ତାପ-ଅନଳେ ଏବେ ହେଉଅଛି ଦହିତ ।

ଦେବି, ଦେବଲୋକୁ ଦିବ୍ୟ ଆଲୋକ ଦେଖାଇ
ନେଇଯାଅ ତବ ପାଶେ ସୁମାର୍ଗେ ଚଳାଇ ।

ବିଳମ୍ବ ନ କର ଆଉ ବିଳମ୍ବ ନ କର,
ବିଳମ୍ବ ହୋଇଲେ କାର୍ଯ୍ୟ ହେବଟି ଦୁଷ୍କର ।

ଏକାକୀ ସହିବାଲାଗି ନାହିଁ ତ କାମନା,
ସେ ଦୁଃଖ ଦେବାକୁ, ସତି, ନ କର ବାସନା ।

ତୁମ୍ଭ ବିନା ଭବ-ଦାବେ ପଡ଼ି ଛଟପଟ
ହେଉଅଛି ହେବ ସିନା ଅନ୍ତର ନପଟ ।

ଲୁଚି ଶରୀପୁରେ ଯାଇ ରହିଲ ନ କହି,
ପାଶୁଥିଲ ଏହା କେବୁଁ କି ଦୋଷକୁ ବହି ।

ସର୍ବ ଭୋଗାଦରୁ ଦେଉଥିଲ ସମ ଭାଗ,
ଏବେ ସେହୁ ସୁଖରୁ କି ବଞ୍ଚିତ ଅଭାଗ୍ୟ ।

ଯଦି ପାରି ତବ ଭୋଗୁଁ ଦେଇ କଥଞ୍ଚିତ
କରିଥ କାମନା ପୂର୍ଣ୍ଣ ଯା ଅଟେ ବାଞ୍ଛିତ ।

ଶେଷ ଦେଖାବେଳେ ତବ ଦିବ୍ୟଦୃଷ୍ଟି ଭାବ
ଦେଖି ଏହୁ ପାପ ଆଖି କହୁଅଛୁ ଠାବ ।

ସେ ଭାବ-ନୀରଧି-ନୀରେ ହୋଇ ମୁଁ ପ୍ଳାବିତ
ପୁନଃ ଦେଖା ଲାଗି ହୋଇଅଛୁ ଆଶାନ୍ୱିତ ।

ଅଜ୍ଞାନ-ଜାଲରେ ହୋଇଥିଲେ ମୁଁ ବେଷ୍ଟିତ
ନ ଭୁଲିବ ନ ଭୁଲିବ ତୁମ୍ଭଙ୍କୁ ନିଶ୍ଚିତ ।

ଭାଗ୍ୟବଶ ମହାସତୀ କେଉଁ ଦୋଷ ଦେଖି
ନୀରବଭାବରେ ଗଲ ଏ ପାନେ ଉପେକ୍ଷି ।

ଧୋଇବ କେ ପ୍ରେମ-ନୀରେ ମୋର ପାପପଙ୍କ,
ଦିଶିବ କେ ସୁଖ ଆଜ ଏ ପାପିର ଅଙ୍କ ।

ପୁଣ୍ୟବତୀ ତବ ପୁଣ୍ୟବଳେ ଏ ଭବର—
ଦୁଃଖ ଜାଣୁ ନ ଥିଲି ମୁଁ କିଞ୍ଚିତମାତର ।

ଆଜ କିଏ ଶୁଣାଇବ ଦୁଃଖହର ମନ୍ତ୍ର,
ଛଳବଶେ କି ବିଚାର ହୋଇଛ ସ୍ୱତନ୍ତ୍ର ।

ମାତୃମୋହେ ଦୁଃଖୀ ହେବ ବୋଲି କି ବିଚାର
ରଖିଥିଲ ଗୁପ୍ତଭାବ କିଛି ନ ପ୍ରଚାର ।

ତୁମ୍ଭ ସତ୍ୟପ୍ରଭା ବଶେ ଏ ଭବ-କାନନେ
ଫୁଟେ ତବ ଅମରତ୍ୱ ପୁଷ୍ପ କି ଯତନେ ।

ସେ ପୁଷ୍ପସୌରଭେ ମୁଗ୍ଧ ହୋଇ ଦେବଗଣ
ଆସି ନେଲେ ସ୍ୱପୁରକୁ କରି ଆମନ୍ତ୍ରଣ ।

ସେହୁ ଆମନ୍ତ୍ରଣ ରକ୍ଷା କରିବାର ପାଇଁ
ଯାଇ ଆଉ ନ ଆସିଲ ସବୁ ଭୁଲିଯାଇ ।

ସ୍ୱର୍ଗପୁର ଦେଖି ମର୍ତ୍ତ୍ୟ ମନ କି ବଳିବ,
କହ ସତେ, ସତ, ଆଉ ଫେରି'କି ଆସିବ !

ଝଶିଯାଉଅଛୁ ଅହା ଅନନ୍ତ ବଦନ,
ମିଶିଯାଉ ନାହୁଁ ଅପଘନେ ଅପଘନ ।

ହେଲେହେଁ ଅଯୋଗ୍ୟ ମୁହିଁ ନ ଧର ତା' ମନେ,
ବରଇ ଏ ଦୀନହୀନ ଜନେ ପଛପଣେ ।

କି ବଚନ କି ପବନ ତୁମ୍ଭର ଚନ୍ଦନ,
ସେ ପ୍ରଭାବେ ଅପବନ ହୋଇଲା ପବନ ।

ଦେବବାଳାଙ୍କର ଶୁଣି ସୁମଧୁର ଗାନ
ମୋର ଶୋକ-ସଙ୍ଗୀତରେ ତେଜିବ କି କାନ ।

କିଦବସ୍ତୁ ସୁଖପ୍ରଦ ପ୍ରାସାଦର ସୁଖ
ଭୁଞ୍ଜି ପାସୋରିଲ, ସତ, ଏ କୁଟୀର ଦୁଃଖ ।

ନନ୍ଦନକାନନ ପୁଷ୍ପ ଗନ୍ଧେ ତବ ମନ—
ଭୃଙ୍ଗ କି ଭୁଲନ୍ତା ଦେଖି ଏ ପାପ-ସୁମନ ।

ମନ୍ଦାକିନୀ ସଲିଳରେ ସ୍ନାନ କଲା ପରେ
ଛୁହିଁ ଦୃଷ୍ଟି ଦେବ ମାଟି ତଡ଼ାଗ କୂପରେ ।

ନ ଶୁଣିଣ ସଖ ତୁମ୍ଭେ ଦୁନ୍ଦୁଭି ବଦାଉ
ଲୋଡ଼ିବ କାହିଁକି ଭଲ ଢୋଲ ଡାଉଁଡାଉଁ ।

ଦେବମେଳେ କରେ ଯେହୁ ପୀୟୂଷ ଭୋଜନ,
ପାର୍ଥିବ ପଦାର୍ଥେ କିପାଁ ରୁଚିବ ତା' ମନ ।

ନ ଭ୍ରମି କପାଇଁ ଦିବ୍ୟ ପୁଷ୍ପକ ସ୍ୟନ୍ଦନେ,
ଅପବିତ୍ର ମର୍ତ୍ତ୍ୟଯାନେ ଛୁଇଁବ କେମନେ ।

କ୍ଷମାଗୁଣେ କ୍ଷମା କର ଏ ଛାର ପାମରେ,
ନାନା ଅପରାଧ କରିଅଛି କୁଭ୍ରମରେ ।

ମୁହିଁ ବଡ଼ ଦୋଷୀ ଅଟେ, ଦେବ, ତୁମ୍ଭଠାରେ,
ଗଲି ଛାଡ଼ି ଦୋଷୀ ବୋଲି ସିନା ଏ ଧରାରେ ।

ମାୟାମୋହେ ଭୁଲି, ସଖା, ନ ଚିହ୍ନି ତୁମ୍ଭଙ୍କୁ
ମାଟି ପରି କାଟିଅଛି ନିଜ ଜୀବନକୁ ।

ଦେଇଛି ମୁଁ କେତେ ଅଶ୍ରୁ ତୁମ୍ଭର ନୟନେ,
ଅର୍ପିଅଛି ନାନା ବାଧା ଅଭୀଷ୍ଟ ସାଧନେ ।

ଯେହ୍ନଲାଗି ସିନା ଏବେ ପାଉଛି ଏ କଷ୍ଟ,
ସତେ କାହା ସେ ପ୍ରତିଜ୍ଞା ହୋଇଯିବ ନଷ୍ଟ ।

ନାହିଁ ନାହିଁ ପୁଣ୍ୟବଳ ମୁହିଁ ମହାପାପୀ,
ଭାବି ଭାବି ଗତ ସ୍ମୃତି ହେଉଛି ସନ୍ତାପି ।

ମର ଦେହେ ଅଳ୍ପ ଧନେ କର ସୁସାଧନା,
ମର୍ତ୍ତ୍ୟୋଦ୍ୟାନେ ରଖିଗଲ-ସତୀତ୍ୱ ବାସନା ।

ସେହୁ ସ୍ନିଗ୍ଧ ପୁଣ୍ୟ ବାସ ଏବେ ପ୍ରତିପଦରେ,
ପ୍ରବେଶି ମୋହୁଛି ଜନେ ସକଳ କାଳରେ ।

ଜପ ତପ ଯାଗ ମଣି ପାତିବ୍ରତ୍ୟ ବ୍ରତ,
ସ୍ନେହେ ମଣି ପାଳୁଥିଲ ହୃଦେ ଅବିରତ ।

ଜାଣିଥିଲ ତୁମ୍ଭେ, ସତି, ପତିସେବା ମୂଲ୍ୟ,
ସବୁ ତୁଚ୍ଛ ମଣୁଥିଲ ମଣିଣ ଅତୁଳ୍ୟ ।

ଦେଇଥିଲ, ସତି, ଯାହା ଗଲ ନେଇ ତାହା,
ମାତ୍ର ଥରେ 'ନ ଦେଖାଇ ତବ ଗମ୍ୟ ରାହା ।

ଗାଇ ଗାଇ ତବଗୁଣ ଏ ପାପ ରସନା,
ହ୍ରାସ କରୁ ମାୟା ମୋହ ବିଚ୍ଛେଦ ବେଦନା ।

ମୂର୍ତ୍ତି ଧରି ଗୋଟି ଗୋଟି ତୁମ୍ଭ ଗୁଣଖ୍ୟାତି
ମୁହୁର୍ମୁହୁଃ ଦିଏ ଦେଖା, ଫାଟିଯାଏ ଛାତି ।

ପାଳୁଥିଲ, ଦେବ, ତୁମ୍ଭେ କେତେ ପରିବାର,
ବାହ୍ୟରେ ସପାଗ ତୁମ୍ଭେ ଅନ୍ତରେ ଉଦାର ।

ତୁମ୍ଭଲାଗି ଧର୍ମ ତୁମ୍ଭେ ପଣ୍ଟୁଥିଲ ନାହିଁ,
ଅର୍ଜୁଥିଲ ତାହା ଯେନା ଏ ଅଭାଗାପାଇଁ ।

କରୁଥିଲ ସଦା ତୁମ୍ଭେ ପୁଣ୍ୟେ ଅବଗାହ,
ବହୁଥିଲା ଧମନୀରେ ପୁଣ୍ୟର ପ୍ରବାହ ।

ହୁଏଁ ପଛେ ଅକିଞ୍ଚନ ଅଧମ ନିର୍ମାଶୀ,
ସଘପଣ୍ଡ ଗୌରବ ତା' ପକାଇବ ଢାଙ୍କି ।

ଯେଉଁ ପୁଣ୍ୟଦେଶେ, ପିତା, ଅଛ ତୁମ୍ଭେ ରହି,
ମର୍ତ୍ତ୍ୟର ଡାକ କି କେବେ ଶୁଣେ ନାହିଁ ତହିଁ ।

ଶୁଭୁଥିବ ଯେବେ ତେବେ ଶୁଣ ଏକ କଥା,
ନିବେଦିବ ପ୍ରଭୁ ପଦେ ମୋର ମର୍ମବ୍ୟଥା ।

ମୋହୋପାଇଁ ଅଳ କଲେ ତୁମ୍ଭେ ପ୍ରିୟତମା,
କହିବେ ସେ ମୋର ସର୍ବ ଅପରାଧ କ୍ଷମା ।

ଯାଇଛ ଗଚ୍ଛିତ ରଖି ମୋ ପାଖେ ଯେ ରତ୍ନ,
ଯୋଗ୍ୟଟିଙ୍କ ମୁହିଁ ତାକୁ କରିବାକୁ ଯତ୍ନ ।

ପ୍ରତିଫଳେ ସେହି ରତ୍ନେ ତୁମ୍ଭ ପୁଣ୍ୟମୂର୍ତ୍ତି,
ଭାସି ବୁଲେ ଆହା ତହିଁ ତବ ସୌମ୍ୟ ମୂର୍ତ୍ତି ।

ହେବ ସିନା ସେହି ରତ୍ନ ମୋର ଗଣ୍ଠିଧନ,
ତା' ଦେଖି ଯାପିବ ମୁହିଁ ପଶ୍ଚିମ ଜୀବନ ।

ବିପଦ କଣ୍ଟକମୟ ଦୁଷ୍ଟ ଭବ-ବନ,
ଅସୁଲଭ ଏଥି ତୁମ୍ଭ ସମାନ ସୁମନ ।

ମହାପୁଣ୍ୟବତୀ ତୁମ୍ଭେ, ସେ ପୁଣ୍ୟବଳରେ
ନେକଲ ଶେଖର, ଦେବ, ମର୍ତ୍ତ୍ୟ ବୈକୁଣ୍ଠରେ ।

ଏଥୁ ବଳ କି ସୌଭାଗ୍ୟ ଅଛି ମାନବର,
ଯେଉଁ ଯେବେ ତନୁତ୍ୟାଗ ଇଚ୍ଛନ୍ତି ଅମର ।

ବୋଲନ୍ତି ମଙ୍ଗଳପୂର୍ଣ୍ଣ ବିଧିର ବିଧାନ,
ମାତ୍ର ତାହା ହେଲା ସିନା ମୋହ ଭାଗ୍ୟେ ଆନ ।

ମନ ମଧ୍ୟେ ଥାଏ ଭଲ ଭବ–ମରୁଭୂମେ,
ଥାଏ ସୁଧା ମକରନ୍ଦ ବିଷାକ୍ତ କୁସୁମେ ।

ଆବାଲ୍ୟରୁ ଏ ପ୍ରବାଦ ଶୁଣିଛି ଶୁଣିଛି,
ବୁଝିପାରୁ ନାହିଁ ତାର ସାର୍ଥକତା କିନ୍ତୁ ।

କି ବୁଝିବି, ପ୍ରଭୁ, ତବ ମାୟାର ରହସ୍ୟ,
ତୁମ୍ଭର ମଙ୍ଗଳ ଇଚ୍ଛା ପୂରିବ ଅବଶ୍ୟ ।

ଏ ଉକ୍ତିରୁ ଅଛି ଯାହା ଭାଗ୍ୟେ ବଞ୍ଚନା ହା,
ରହିଲି ପ୍ରସ୍ତୁତ ହୋଇ ଭୁଞ୍ଜିବାକୁ ତାହା ।

ଭେଟ ହେଲା ଯାଏ, ସତ, କରୁଥିବି ହଠ,
ମାତ୍ର ଏତେ କହୁଛି ତା' ନ ଦେବନି କଷ୍ଟ ।

ବିଦାୟ ନେଉଛି ପ୍ରେମ ଆନନ୍ଦ ଚିତ୍ତରେ,
ତବ ଦିବ୍ୟଛବି ପୋଷି ମୋ ଅନ୍ତର୍ଗତରେ ।

ଯାବତ ଉଇଁବେ ନଭେ ଶଶୀ ତାରା ଘନ,
ନୋହିବ ତାବତ ତବ ସ୍ୱଗୁଣ ବିଲୀନ ।

ମାଗୁଣି ଏତିକି ମାତ୍ର, ଦେବମେଳେ ନତ
କର ଆଶୀର୍ବାଦ ଭେଟ ଦେବାକୁ ଜୁଟିଛି ।

ଭେଟଯାଏଁ ଗୁନ୍ଥିଥିବ ଅଶ୍ରୁ ମୁକ୍ତାହାର,
ଲେଖିଥିବି ଲୋତକରେ ଶୋକ-ଉପହାର ।



ଯାହାଲାଗି ଲାଗିଥିଲା ପରୀକ୍ଷା ଅଶେଷ,
ହାୟ ପ୍ରଭୋ ! ଏବେ ତାହା ଭସ୍ମଅବଶେଷ ।

ନ କହାଅ ଅଉ ନେଙ୍କେ ଭବ ଦୁଃଖବନ,
ସ୍ୱର୍ଗାଗ୍ରେ ଚରଣତ ହେଉ ସେ ବଦନ ।

ସନ୍ତାପିତ ପ୍ରାଣବୃନ୍ଦ କୃପାମ୍ବୁ ଅଭାବେ
ଝାଉଁଳି ଯାଉଛନ୍ତି ଏଥି ଭବମୋହଦାବେ ।

ଶରଣରକ୍ଷଣବାନା କେବେ ଚପଳରେ
ଉଡ଼ୁବ ମହିମାନଳେ ନୀଳାଦ୍ରିଶିଖରେ ।

ତୁମ୍ଭର ମହିମା ଶୁଣି ଆସିଅଛି ଧାଇଁ,
ନୈରାଶ୍ୟ-ସ୍ରୋତରେ ହରି, ନ ଦିଅ ଭସାଇ ।

ନାହିଁ ନିସ୍ତାରଣ ଆଉ ଏ ଘୋର ପାମରେ,
ହୀନମାନ ହେବ ସିନା ବିଭ୍ରମି ଭ୍ରମରେ ।

ଅହା ବୋଲିବାକୁ ପ୍ରଭୁ, କେହି ନାହିଁ ସାହା,
ଭରସା କେବଳ ମୋର ତୁମ୍ଭେ ଚଉବାହା ।

ତୁମ୍ଭେ ମୋ ଭରସା ଆଶା ମୋକ୍ଷର କାରଣ
ବୋଲି ଭକ୍ତେ ନ ଭୁଲନ୍ତି ତବ ଶ୍ରୀଚରଣ ।

ଅତି ବଡ଼ ପାମର ମୁଁ ଅଟଇ ପତିତ,
ପତିତପାବନବାନା କିପାଁ ବା ସ୍ଥଗିତ ।

ଅଜାମିଳ ପୁଣି ଗଜଉଦ୍ଧାର ଚରିତ
ଦେଖଇଣ ମୁଁ ଆଶ୍ୱାସନା ଲଭନ୍ତି ଚିତ୍ତ ।

ପୂର୍ଣ୍ଣ ଆଶା କରନ୍ତି ଯେ ତୃଷିତ ଚାତକ,
ନାଶିବ ପିପାସା ପିଇ କରୁଣା-ଉଦକ ।

କ୍ଷମାମୟ, ମାଗେ ତବ ପଦେ କ୍ଷମାଭିକ୍ଷା,
ଦୀନହୀନେ ନ କର ଏ କଠୋର ପରୀକ୍ଷା ।

ଶରଣରକ୍ଷଣ ଅହେ ପତିତପାବନ,
ତୁମ୍ଭ ବିନା କେ କରିବ ପତିତ ପାବନ ।

ସ୍ୱୟମ୍ଭୂ ଈଶ୍ୱର ଗତି ମୁକ୍ତିର ଆଧାର,
ଭବାର୍ଣ୍ଣବ ତରଣରେ ତୁମ୍ଭେ କର୍ଣ୍ଣଧାର ।

ସଂସାର-ସାଗରେ ପଡ଼ି ଭାସୁଛନ୍ତି ଆକୁଳେ,
କରୁଣା-ତରଣୀ ଦେଇ ପହଞ୍ଚାଅ କୂଳେ ।

କରୁଣା-ବରୁଣାଳୟ ଅଗତିର ଗତି,
ନରଶ୍ରେଷ୍ଠର ଆଶ୍ରୟ ଜଗତର ପତି ।

ପଞ୍ଜର ଏ ମୋର ଜୀର୍ଣ୍ଣ ଶୀର୍ଣ୍ଣ କଳେବରେ
ଦେଇ ନବ ବଳ ଧୈର୍ଯ୍ୟ ଖଟାଅ ପଞ୍ଜରେ ।

ଫୁଟୁ ହୃଦ-ବନେ ଭକ୍ତି-ସୁବାସ-ମଲ୍ଲିକା,
ସାଧୁଗଣେ ଅନୁକ୍ଷଣେ ହେଉ କଣା ବଙ୍କା ।

ନିଯୁକ୍ତ ନିୟମ ଅଛୁ ନିଜ ଅଧିକାର
ତୁମ୍ଭେ ଥାଉଁ ଥାଉଁ କେପାଁ କରିବ ବିସ୍ତାର ।

କେପାଁ ଭକ୍ତ ଥାଉଁ ଥାଉଁ ତୁମ୍ଭ ପଦ ପନ୍ଥା,
ହୃଦୟ-କାନନେ ଫଟେ ଦହେ ଚିନ୍ତା-ଚିତା ।

ହେଲଣି ମୁଁ ଅବସନ୍ନ ଭୁଲି ଆତ୍ମଜ୍ଞାନ,
ଆଉ ନ ଭୁଲାଇ ପ୍ରଭୁ ଦିଅ ଶୁଦ୍ଧ ଜ୍ଞାନ ।

ସମ୍ପୂର୍ଣ୍ଣ



